ଇଲାକ ପୁସ୍ତକମାଳା - ୧୧




# ଇଏ ଆମ ପୁରାଣ କଥା



ଡକ୍ଟର ଅରବିନ୍ଦ ପଟ୍ଟନାୟକ

ଇଲାକ ପୁସ୍ତକମାଳା - ୧୧

# ଛଅ ଆମ ପୁରାଣ କଥା

ଡକ୍ଟର ଅରବିନ୍ଦ ପଟ୍ଟନାୟକ

ବସୁଧାରା ପ୍ରକାଶନୀ
ଭୁବନେଶ୍ୱର

# ଇଏ ଆମ ପୁରାଣ କଥା

ଲେଖକ : **ଡକ୍ଟର ଅରବିନ୍ଦ ପଟ୍ଟନାୟକ**

ପ୍ରକାଶକ :
**ବସୁଧାରା ପ୍ରକାଶନୀ**
ଏ-୧୧, ଗ୍ରାଉଣ୍ଡ ଫ୍ଲୋର
ଲର୍ଡ୍ ଗୁଞ୍ଜନ ପାଲେସ୍
ରସୁଲଗଡ଼, ଭୁବନେଶ୍ୱର



ପ୍ରଥମ ପ୍ରକାଶ - ୨୦୦୧ ମସିହା

ମୁଦ୍ରଣ :- **କେଦାର ପ୍ରିଣ୍ଟିଂ ପ୍ରେସ୍**
ଭୁବନେଶ୍ୱର-୨୨

ମୂଲ୍ୟ - **୧୦ ଟଙ୍କା** (ଦଶ ଟଙ୍କା ମାତ୍ର)

# EA AMA PURANA KHATHA

*Written by* : **Dr. ARABINDA PATNAIK**

*Published by* :
**BASUDHARA PRAKASHANI**
A-11, Ground Flour
Lord Gunjan Palace
Cuttack Road
Rasulgarh, Bhubaneswar



Printed at :
**KEDAR PRINTING PRESS**
Bhubaneswar-22

Price :- (Rupees Ten only)
**Rs. 10/- only.**

# ବୟସ ମାତ୍ର ସାତ

ଯମୁନା ନଈ କୂଳରେ ଗାଁଟିଏ । ନାଁ ତାର - ଗୋପ । ଗୋପାଳମାନଙ୍କର ଗାଁ । ନନ୍ଦ ସେଇ ଗାଁର ରଜା । ତାଙ୍କ ରାଣୀଙ୍କ ନାଁ - ଯଶୋଦା । ଦୁହିଁଙ୍କୁ ଦୁହେଁ ଭାରି ଭଲ । ସବୁରି ହିତରେ ଥାଆନ୍ତି । ଲୋକେ ଖାଇ ପିନ୍ଧି ଭଲରେ ଚଳନ୍ତୁ, ଗାଈ ଗୋରୁ ଚରିବା ପାଇଁ ଚରାଭୂମି ପାଆନ୍ତୁ, ରାଜ୍ୟକୁ ଜଳ କଷ୍ଟ ନହେଉ, ଏଇଆ ଥାଏ ସେମାନଙ୍କର କାମନା । ସେଥିଲାଗି ଇନ୍ଦ୍ର ଦେବତାଙ୍କୁ ପୂଜା କରନ୍ତି । ବର୍ଷକେ ଥରେ ତାଙ୍କର ଉତ୍ସବ କରନ୍ତି । ସେମାନେ ବିଶ୍ୱାସ କରୁଥିଲେ - ଇନ୍ଦ୍ର ଦେବତା ଖୁସି ହେଲେ, ପାଳକ ଭଳ ହେବ । ଠିକ୍ ସମୟରେ ଜଳ ବର୍ଷିବ । ଚାଷ ବାସ ଭଲ ହେବ । ପଡ଼ିଆ କଅଁଳ ଦୁବଘାସରେ ହସି ଉଠିବ । ପାଣିର ଅଭାବ ରହିବ ନାହିଁ । ସେଥିପାଇଁ ବଡ଼ ଆଡ଼ମ୍ବରରେ ଉତ୍ସବଟିକୁ ପାଳୁଥିଲେ । ଏଥିରେ ନନ୍ଦରାଜା ଭାରି ମନଦେଇ ଲାଗି ପଡୁଥିଲେ ।



ନନ୍ଦ ଓ ଯଶୋଦାଙ୍କ ଗେଲବସର ପୁଅ - କୃଷ୍ଣ । ଖେଳ, ଗୋଠରୁ ଗୋରୁ ଜଗିବା, ପାଠ ପଢ଼ିବା, ବଂଶୀ ବଜାଇବା ସବୁଥିରେ ଆଗୁଆ । ବୁଦ୍ଧିରେ ବିଚକ୍ଷଣ । ସେଇ ଅନୁସାରେ କଥା । ବଣ ପାହାଡ଼, ଝରଣା ତାଙ୍କର ଅତିପ୍ରିୟ । ସେ କହୁଥିଲେ-

ବନ ଗହନ ଆମ୍ଭ ଘର,

ଗୋରୁ ଚରାଉ ନଦୀ ତୀର ।

ନିର୍ଝର ଜଳ ପାନ କରି,

ଆମ୍ଭ ଦେବତା ବନ ଗିରି ।

ସେ ଭାବୁଥିଲେ- ଇନ୍ଦ୍ରଙ୍କୁ ପୂଜା କଲେ ଲାଭ କଅଣ ? ବରଂ ଗୋବର୍ଦ୍ଧନ ପାହାଡ଼କୁ ପୂଜା କଲେ ଖୁସି ଲାଗିବ । ମନ ମଉଜରେ ଖିଆ ପିଆ କରିବା । ଗୋରୁ ଗାଈଙ୍କୁ ତୃଣ ସହିତ ଅନ୍ୟ ଖାଦ୍ୟ ଖୁଆଇବା । ଗିରି ଚାରିପଟେ ବାଜା ବଜାଇ ଗୀତ ଗାଇ ଗାଇ ବୁଲିବା । ଇଏ ହେବ ଗୋଟାଏ ଉତ୍ସବ । ଏମିତି ଥାଏ ତାଙ୍କର ବିଚାର ଓ ମତ । ସେତେବେଳକୁ ତାଙ୍କର ବୟସ ମାତ୍ର-ସାତ ବରଷ ।

## ଯା' ପଚାରିବ ବାପାଙ୍କୁ

ଗୋପରେ ଆୟୋଜନ ଚାଲିଥାଏ । ବଡ଼ ଆଡ଼ମ୍ବରରେ ପୂଜା ହେବ ସେ ବର୍ଷ । ଗୋପାଳମାନେ ଉତ୍ସାହରେ ମାତି ଥାଆନ୍ତି । ସେତିକିବେଳେ କୃଷ୍ଣ ସେଇଠି ହାଜର ହେଲେ । ସାଙ୍ଗରେ ଆଉ କେତେ ଜଣ ସାଥି । କୃଷ୍ଣ ବୁଢ଼ା ବୁଢ଼ା ଗୁରୁଜନମାନଙ୍କୁ ପଚାରିଲେ - 'ଇଏ କ'ଣ ହେଉଛି ?'



କିଏ ଭାବିଲା - 'ଛୋପରାଟାଏ । ସତେ ଯେମିତି କିଛି ଜାଣିନି ।' କିଏ ଭାବିଲା - 'ପିଲା ବୁଦ୍ଧିତ ! ଏମିତି ପଚାରି ଦେଉଛି' । ଜଣେ କିଏ କହିଦେଲେ - 'ଇନ୍ଦ୍ର ପୂଜା ପାଇଁ ଆୟୋଜନ ଚାଲିଛି ।'

କୃଷ୍ଣ ପଚାରିଲେ - 'ଇନ୍ଦ୍ରକୁ ପୂଜିଲେ କ'ଣ ହେବ ?' କାମ ବେଳେ କାହାର ବା ତର ଅଛି ? କେଜାଣି ନନ୍ଦ ରଜାଙ୍କର ଅବା ବେଳଥିବ ! ସେ ବୁଝାଇ ବସିବେ, ପୁଣି ପୁଅ ତାଙ୍କର କଥା ଉପରେ ଲଥା ଚଢ଼ାଇ ଜବାବ ସୁଆଲ କରୁଥିବ, ଚାଲିଥିବ ବାପ ପୁଅଙ୍କ କଥା ଭାଷା ।

ଜଣେ ବୃଦ୍ଧ ଗୋପାଳ ଥିଲେ । ସେ କହିଲେ - 'ତମ ବାପାଙ୍କୁ ପଚାର । ଆମେ ତ ତାଙ୍କରି ବୋଲରେ ମାତିଛୁ ।'

କଥାଟା ଦି ତିନି ଜଣଙ୍କ ମନକୁ ପାଇଲା । କହିଲେ - 'ହଁ ହଁ, ଯା ପଚାରିବ ବାପାଙ୍କୁ ।'

**ବାପା ବୁଝାଇଲେ ପୁଅକୁ**

ନନ୍ଦ ଏବେ କୋଉ ନିକିମା ଲୋକ ! ସେ ତାଙ୍କ କାମରେ ଲାଗି ଥାଆନ୍ତି । କିନ୍ତୁ କୃଷ୍ଣଙ୍କୁ ଦେଖି ଖୁସି ହୋଇଗଲେ । ଯେତେ ହେଲେ ତ ପୁଅ । ସାନ ପିଲା । ସ୍ନେହ ଆଦର ନ ପାଇଲେ ବୁଦ୍ଧି ବଢ଼ିବ କେମିତି ? ପଚାରିଲେ - 'କଅଣ କିରେ ପୁଅ ?'

କୃଷ୍ଣ ପଚାରିଲେ 'ଇନ୍ଦ୍ର' କିଏ ? ତାଙ୍କ ପୂଜା ପାଇଁ ଏତେ ଆୟୋଜନ କାହିଁକି ଚାଲିଛି ?

ଇଏତ ପ୍ରଶ୍ନ ନୁହେଁ । ଇନ୍ଦ୍ର ଦେବତାଙ୍କ ପ୍ରତି ଅବମାନନା । ଏଇ ପୂଜାର କାରଣ ଅକାରଣ କଥା ଭାବିବାକୁ କୃଷ୍ଣ କିଏ ?- ନନ୍ଦବା କିଏ ? କାଳ କାଳରୁ ଚଳି ଆସୁଛି । ନ ପାଳିଲେ ନିନ୍ଦା ହେବ । ଦୋଷ ଲାଗିବ । କିଏ ଜାଣେ, କଣ ନା କଣ ଅଘଟଣ ହୁଏ ତ ଘଟିଯିବ !



ନନ୍ଦ ଟିକିଏ ଚୁପ୍ ରହିଗଲେ । ଭାବିଲେ । କହିଲେ - ''ବାବୁରେ, ଏମିତି କଥା କହନ୍ତିନି । ଇନ୍ଦ୍ର ପରା ଦେବତାମାନଙ୍କ ଭିତରେ ରଜା । ଏଇ ପୂଜା କଲେ, ସେ ଖୁସି ହେବେ । ବର୍ଷା ହେବ । ବିଲରେ ଶସ୍ୟ ବଢ଼ିବ । ଗଛ, ଲତା, ତୃଣ ବଢ଼ିବେ । ଜୀବ ଜଗତ ଖାଇ ପିଇ ସୁଖରେ ରହିବେ । ସେଥିପାଇଁ ତାଙ୍କର ଏଇ ପୂଜା ବହୁକାଳରୁ ଚଳି ଆସୁଛି । ପୁଣି ଏମିତି ଚଳି ଆସୁଥିବା ଚଳଣିକୁ ନ ପାଳିଲେ ପାପ ହେବ । ଲୋକେ ନିନ୍ଦା କରିବେ । କହିବେ କୃପଣ ପଣରେ କଲେ ନାହିଁ । ତେଣେ ଇନ୍ଦ୍ର କୋପ କରିବେ । ତୁ ଯା, ଖେଳିବୁ । ପୂଜା ହେଲା ବେଳେ ଦେଖିବାକୁ ଆସିବୁ ।''

## ପୁଅ ମନ କି ବୁଝେ ?

କୃଷ୍ଣ ତ ଏମିତି ସେମିତି ପିଲା ନ ଥିଲେ । ସେ ଦେଖିଲେ ବାପା କିଛି ଭାବିଚିନ୍ତି କାମଟା କରୁ ନାହାନ୍ତି । ଏମିତି ଗୋଟାଏ ହୋ'ରେ ମାତିଛନ୍ତି । ''ସମସ୍ତେ କରୁଛନ୍ତି । କାଳ କାଳରୁ ଚଳି ଆସୁଛି । ତେଣୁ ଆମେ ପାଳିବା''- ଇଏ କଅଣ ବୁଦ୍ଧିଥିବା ଲୋକର କଥା ? ହେଲେ



ବାପା ଗୁରୁଜନ । ମାନ୍ୟ ଲୋକ । ତାଙ୍କ କଥାଟାକୁ ସିଧା ସଳଖ କାଟି ହେବ ନାହିଁ । ଟିକିଏ ବାଗେଇ, ସରସ ସହଜ ଢ଼ଙ୍ଗରେ କହିବାକୁ ପଡ଼ିବ । ନହେଲେ ଅସୁନ୍ଦର ଦିଶିବ । ମାନ୍ୟ ଲୋକଙ୍କୁ ବେଖାତିର କଲାପରି ହେବ । ଇଏ ବି ଗୋଟାଏ ଖରାପ କଥା । ତେଣୁ କୃଷ୍ଣ ଭାବିଲେ କେମିତି କହିବେ ।

ନନ୍ଦ ଦେଖିଲେ କୃଷ୍ଣ ନୀରବ ଅଛନ୍ତି । ଭାବିଲେ - ସେ ବୁଝିଗଲେ । ପଚାରିଲେ - 'ବୁଝିଲୁ ତ ପୁଅ ?'

ହେଲେ, ପୁଅ ମନ କି ବୁଝେ ?

## ସଂସାରରେ ଅଛନ୍ତି ଦୁଇ ପ୍ରକାର ମଣିଷ

କୃଷ୍ଣ କହିଲେ- 'ବାପା ସଂସାରରେ ଦୁଇ ପ୍ରକାରର ମଣିଷ ଅଛନ୍ତି । ଗୋଟିଏ ପ୍ରକାରର ମଣିଷ ଭାବନ୍ତି - ହଁ, ଏଇ ମତରେ ତ ସମସ୍ତେ ମାତିଛନ୍ତି । ଚାଲ ମାତିଯିବା । ନ ବୁଝି ନ ବିଚାରି ଦଳେ ଲୋକଙ୍କ ପଛେ ପଛେ ଚାଲିଥାଆନ୍ତି । ସେମାନେ କୁଆଡ଼େ କାହିଁକି ଯାଉଛନ୍ତି, ବୁଝିବାକୁ ମନ ବଳାନ୍ତି ନାହିଁ । ଦେଖନ୍ତି ଗୋଟାଏ ପ୍ରଥା ଚଳି ଆସୁଛି । କହନ୍ତି - ଚାଲ ଆମେ ସେଇ ଅନୁସାରେ ତାକୁ ଚଳାଇ ନେବା । କିନ୍ତୁ ଆଉ ପ୍ରକାରେ ଲୋକ ବି ଅଛନ୍ତି, ସେମାନେ ଏମିତି ନୁହନ୍ତି ।'

ନନ୍ଦ ଚାହିଁଥାନ୍ତି ପୁଅ ଆଡ଼କୁ ।



କୃଷ୍ଣ କହିଲେ - 'ବାପା ଏଇ ଅନ୍ୟ ପ୍ରକାର ଲୋକ ଟିକିଏ ନିଆରା । ସେମାନେ କାହା ପଛରେ ନ ଭାବି ନଚିନ୍ତି ଗୋଡ଼ାନ୍ତି ନାହିଁ । ପ୍ରଥାଟାଏ ଖାଲି ଚଳି ଆସୁଛି ବୋଲି ମାନି ଯାଆନ୍ତି ନାହିଁ । ସେମାନେ ବୁଦ୍ଧି ବିବେକ ଖଟାଇ ବିଚାର କରନ୍ତି । କଥାଟା ସବୁ ଦୃଷ୍ଟିରୁ ଗ୍ରହଣ ଯୋଗ୍ୟ ହେଲେ, ମାନି ନିଅନ୍ତି । ନ ହେଲେ ନିଜ ବାଟ ନିଜେ ତିଆର କରନ୍ତି ।'

ନନ୍ଦ ଶୁଣୁ ଥାଆନ୍ତି । କୃଷ୍ଣ ପଚାରିଲେ - 'ବାପା, ଇଆ ଭିତରୁ କେଉଁ ପ୍ରକାରଟି ଭଲ ? ଆପଣ କାହାକୁ ଶ୍ରେଷ୍ଠ ବୋଲି କହିବେ ?' ପ୍ରଶ୍ନ ଭିତରୁ ତ ଉତ୍ତର ବାହାରି ଆସୁଛି । ନନ୍ଦ କ'ଣ ବା କହିବେ ? ସେ ଖାଲି ଶୁଣୁଥାଆନ୍ତି ।

**ଇଏ ପୁରାଣର କଥା**

କୃଷ୍ଣ ପୁଣି କହିଲେ - 'ଦେବତା କଅଣ କରିବେ ? କର୍ମ ହିଁ ସବୁ ଦିଏ, ଦିଆଏ । ଭଲ - ମନ୍ଦ, ସୁଖ, ଦୁଃଖ, ଲାଭ, କ୍ଷତି - ଏ ସବୁ କର୍ମର ଫଳ । ଏପରି କି ନିଜେ ଇନ୍ଦ୍ର ମଧ୍ୟ ତପସ୍ୟା ବଳରେ ଇନ୍ଦ୍ରପଦ ଲାଭ କରିଛନ୍ତି । ତେଣୁ ତାଙ୍କ ପୂଜାରେ ନମାତି, କର୍ମକୁ ବଡ଼ ବୋଲି ଭାବିବା ଠିକ୍ ହେବ ।'

ଭାଗବତ ପୁରାଣରେ ଏଇ କଥା ବଡ଼ ସୁନ୍ଦର ଭାବରେ ଲେଖା ହୋଇଛି । ସେଥିରେ ଅଛି -

କୃଷ୍ଣ କହନ୍ତି ଶୁଣ ତାତ
ଜଗତ କର୍ମେ ଆତ ଯାତ ।
ଏ ଜୀବ ନିଜ କର୍ମ ଫଳ,
ଭୁଞ୍ଜନ୍ତି ରହି ଏ ଶୟଳ ।
କର୍ମର ମତେ ସୁଖ ଦୁଃଖ,
ଜନ୍ମ ମରଣ ହୁଏ ଦେଖ ।
କର୍ମଟି ସୁଖ ଦୁଃଖ ଦାତା,
ବିଶ୍ୱ ସଂସାରେ ବଳବନ୍ତା ।
କର୍ମ ହୁଁ ନାହିଁ ଆନ ଦେବ,
ଭୋ ତାତ କର୍ମ ପଦେ ସେବ ।





ଆମ କର୍ମର ସହାୟକ ବନଗିରି । ତେଣୁ ତାକୁ ହିଁ ପୂଜା କଲେ କ୍ଷତି କଣ ? ସେଥିପାଇଁ ଯିଏ ଯାହା ମତରେ ଗିରି ପୂଜା କରିବା ଠିକ୍ ହେବ ।

ନା-ନା ବ୍ୟଞ୍ଜନ ଷଡ଼ରସ,
ପିଷ୍ଟକ ପ୍ରପାନ ପାୟସ ।
ଗୋରସ ରସ ସରପୂଳି,
ନାନା ପିଷ୍ଟକ ଖଣ୍ଡ ବୋଳି ।

ଏହା ସବୁ ଗିରି ଗୋବର୍ଦ୍ଧନ ଆଗରେ ରଖି ଯିଏ ଯାହା ମତ ଅନୁସାରେ ପୂଜା ଚଢ଼ାଇବା । ଖାଇବା, ଗୋରୁମାନଙ୍କୁ ଖୁଆଇବା ।

ଯେ ଯାହା ମତେ ପୂଜା କରି ,
ସୁଖେ ଭୁଞ୍ଜିବେ ନରନାରୀ ।
କୋମଳ ତୃଣ ଅନ୍ନ ସଙ୍ଗେ,
ଗୋରୁଙ୍କୁ ଖୁଆଇବା ରଙ୍ଗେ ।
ପର୍ବତେ ବଳି ଭୋଜା ଦେଇ,
ସକଳେ ଅଳଙ୍କାର ନାଇ ।
ଗିରି କରିବା ପ୍ରଦକ୍ଷିଣ,
ଆରାଧି ଅନଳ ବ୍ରାହ୍ମଣ ।
ମୋହର ମତ ଏ ଯୋଗାଇ,
କୃଷ୍ଣ କହନ୍ତି ନନ୍ଦେ ଚାହିଁ ।



ଇଏ ପୁରାଣର କଥା ।

## ପୁରାଣ' ପୁଣି କଅଣ ?

ପୁରାଣ ବୋଇଲେ - ପୁରୁଣା କାଳର କଥା । ଏଗୁଡ଼ିକରେ ଦିଅଁ ଦେବତାଙ୍କ ଲୀଳା ଖେଳାର ବର୍ଣ୍ଣନା ଥାଏ । ଏହାକୁ କେହି କେହି କହନ୍ତି - ପବିତ୍ର କାହାଣୀ ବା ପୁଣ୍ୟପ୍ରଦ କାହାଣୀ । ଏପରି କାହାଣୀ ଶୁଣିଲେ ମନ ପବିତ୍ର ହୁଏ । ତେଣୁ ସେମାନେ ଏହାକୁ ପବିତ୍ର ଓ ପୁଣ୍ୟପ୍ରଦ ବୋଲି ଭାବନ୍ତି । ଏଗୁଡ଼ିକ ସେମାନଙ୍କୁ ସତ ପରି ଲାଗେ । ଏହାକୁ ଶୁଣିଲେ ପୁଣ୍ୟ ହୁଏ ବୋଲି ସେମାନେ ବିଶ୍ୱାସ କରନ୍ତି । ଗୋଟିଏ ଘଟଣାର ବର୍ଣ୍ଣନା ଭିତରେ, କେତେକ ଛୋଟ ଛୋଟ ଘଟଣା ଖଞ୍ଜା ହୋଇଥାଏ । ଏହା ଦ୍ୱାରା ମୂଳ ବର୍ଣ୍ଣନାଟି ବଳିଷ୍ଠ ହୁଏ । ପ୍ରାଞ୍ଜଳ ହୁଏ । ମୂଳ ଘଟଣାର ବର୍ଣ୍ଣନାକୁ କୁହାଯାଏ - ଆଖ୍ୟାନ । ତା ଭିତରେ ଯୋଡ଼ା ହୋଇଥିବା ଛୋଟ ଛୋଟ ବର୍ଣ୍ଣନା ଗୁଡ଼ିକ - ଉପାଖ୍ୟାନ । କେହି କେହି ଏହାକୁ ମନ ଖୁସିରେ ପଢ଼ନ୍ତି । ସେମାନଙ୍କ ପାଇଁ ଏହା କାହାଣୀ । କିନ୍ତୁ, ଏଗୁଡ଼ିକ ଏହାର ବିଶେଷତ୍ୱ ଦୃଷ୍ଟିରୁ 'ପୁରାଣ-କାହାଣୀ' ।

## ଏଥିରେ ଥାଏ ଅଦ୍ଭୁତ କଳ୍ପନା

ପୁରାଣର ଦେବତା ତ ମଣିଷ ନୁହନ୍ତି । ତେଣୁ ସେମାନେ ମଣିଷ ନ ପାରିଲା କାମ କରି ପାରନ୍ତି । ସେପରି ବର୍ଣ୍ଣନା ପୁରାଣ ମାନଙ୍କରେ ଅଛି । ଉପରେ ଯେଉଁ ଘଟଣା କୁହାଗଲା ସିଏତ ସରିନି । ସେଇଥିରେ ଅଛି - ଇନ୍ଦ୍ର କଅଣ କଲେ ।

## ଇନ୍ଦ୍ର ଦେବତା ରାଗିଲେ

ଇନ୍ଦ୍ରଙ୍କ ପୂଜା ବନ୍ଦ ହେବାରୁ ଇନ୍ଦ୍ର ରାଗିଲେ । ସେ ଜାଣିଲେ ଯେ, ଏହା କୃଷ୍ଣଙ୍କ କାମ । ତେଣୁ ରାଗ ଆହୁରି ବଢ଼ିଲା ।

ବାଳକ ସପତ ବରଷ,
ତା ବୋଲେ ପାଇଲେ ବିଶ୍ୱାସ ।



ବାଳକ ପ୍ରାୟ ଖେଳକୁ ଥାଇ,
ପାଠ ପଠନ ନ ଜାଣଇ ।
ଗୋରୁ ଚରାଇ ବନେ ବନେ,
ଗୋପାଳ ସଙ୍ଗେ ବେଣୁସ୍ୱନେ ।
ପଣ୍ଡିତ ପ୍ରାୟ ତାକୁ ମଣି,
ମୋହର ମହିମା ନ ଜାଣି ।



ତେଣୁ ଇନ୍ଦ୍ରଙ୍କ କୋପ ପଡ଼ିଲା ଗୋପ ଉପରେ । ହେଲା ପ୍ରଚଣ୍ଡ ବର୍ଷା । ଚାରିମେଘ ଏକାଠି ବର୍ଷିଲେ । ପାଣି ସହିତ କୁଆପଥର ମାଡ଼ ଚାଲିଥାଏ ।

ଗୋପାଳମାନେ ଯିବେ କୁଆଡ଼େ ? କୃଷ୍ଣ କରିବେ କ'ଣ ? ଦେବି ଧରି ପାନେ'- ଇନ୍ଦ୍ର ଭାବୁଥାଆନ୍ତି ଏମିତି ।



କିନ୍ତୁ କୃଷ୍ଣ ଧରିଲେ - ଗିରି ଗୋବର୍ଦ୍ଧନକୁ ଛତାପରି । ତାରି ତଳେ ଗୋପ ଓ ଗୋପାଳମାନେ ରହିଗଲେ । ଗୋରୁ ଗାଈ ରହିଗଲେ । ଇନ୍ଦ୍ର କିଛି କରିପାରିଲେ ନାହିଁ। ହାରିଲେ । କୃଷ୍ଣ ହେଲେ ଗିରିଧାରୀ ।

**ଏକୁ କଣ ସତ ମଣିବା ?**

ଏଇ ଅଦ୍ଭୁତ କଳ୍ପନା ପଛରେ ଅଛି - ଗୋଟିଏ ବାର୍ତ୍ତା । ସେଇଟି ହେଲା - ଆତ୍ମବଳ ବା ଜଣକର ନିଜ ମନ ଭିତରର ବଳ । ଜଣେ ନିଜର ଆତ୍ମବଳରେ ବଳୁଆ ହେଲେ, ସେ ଅନ୍ୟର ମନ ବଳକୁ ବଢ଼ାଇ ଦେଇପାରେ । ତା' ଭିତରେ ଆତ୍ମବଳ ଜାଗ୍ରତ କରାଇ ଦେଇପାରେ । ଏପରି ଆତ୍ମବଳରେ ବଳୁଆ ଦଳେ ଲୋକଙ୍କ ଆଗରେ ବାହାର ବଳ ହାର ମାନିଯିବ । ଏଇ ପୁଣ୍ୟ ପ୍ରଦ କାହାଣୀ ଭିତରୁ ଏପରି ଗୋଟିଏ 'ବାର୍ତ୍ତା' ମିଳୁଛି ।

**ସତ ହେଉ କି ମିଛ ହେଉ**

ଏବେ ବି ଭାରତର ବହୁ ଜାଗାରେ - ଗିରି ଗୋବର୍ଦ୍ଧନ ପୂଜା ହୁଏ । ଗୋବର୍ଦ୍ଧନଟି ଉତ୍ତର ପ୍ରଦେଶର ଗୋପ ବା ବୃନ୍ଦାବନରେ । କିନ୍ତୁ କାର୍ତ୍ତିକମାସର ଏଇ ପୂଜା, ସାରା ଭାରତରେ ହୁଏ । ଉତ୍ସବ ହୁଏ । ଗିରି ପ୍ରଦକ୍ଷିଣ କରାଯାଏ । ନୃତ୍ୟ କୀର୍ତ୍ତନ ହୁଏ । ଲୋକେ ଉତ୍ସବର ଆନନ୍ଦ ଉପଭୋଗ କରନ୍ତି । ଏହା ସହିତ ଯୋଡ଼ି ହୋଇଥିବା ଗପଟି ସତ ହେଉକି ମିଛ ହେଉ, ଉତ୍ସବର ଆନନ୍ଦ ତ ମିଳେ ।





କୃଷ୍ଣ, ରାମ ପ୍ରଭୃତି ଦେବତା ଚରିତ୍ର ସହିତ ଅର୍ଜୁନ, ଅଭିମନ୍ୟୁ, ହନୁମାନ, ଲକ୍ଷ୍ମଣଙ୍କ ପରି ବୀର ଚରିତ୍ର ଏବେ ବି ଭାରତୀୟମାନଙ୍କର ମନକୁ ରସବନ୍ତ କରେ । ବଳ ଦିଏ । ସାହସ ଦିଏ । ଏଗୁଡ଼ିକ ଭାରତୀୟ ଚରିତ୍ର । ପୁରାଣମାନଙ୍କରେ ଏପରି ଭାରତୀୟ ଚରିତ୍ର ପ୍ରତିଫଳିତ ହୋଇଛି । ତେଣୁ ଆମ ପୁରାଣ ଆମକୁ ଭଲ ଲାଗେ ।

ଆମର ପୁରାଣ ଅନେକ । ସେଥିରୁ ଗୋଟିଏ ଗୋଟିଏ ଆଖ୍ୟାନ, ଉପାଖ୍ୟାନ ବା କାହାଣୀ ଶୁଣିଲେ ମନ ଖୁସି ହୁଏ । ସେଥିରୁ କିଛି ବାର୍ତ୍ତା ବା ବାଣୀ ମିଳେ ଗୋଟଏ ଗୋଟିଏ ଉପାଖ୍ୟାନ ମନକୁ ଛୁଏଁ । ଅବାଟରେ ବାଟ ବତାଏ । ଆମେ ବଡ଼ ଶ୍ରଦ୍ଧାରେ ଶୁଣୁ । ମନେ ପକାଉ । ମନେ ରଖୁ । କାରଣ- ଇଏ ଆମ ପୁରାଣ କଥା ।


ମହାପୁରୁଷ ଜଗନ୍ନାଥ ଦାସ

**ବ୍ୟାସଙ୍କଠାରୁ ଜଗନ୍ନାଥ ଦାସ**

'ବ୍ୟାସ' ଶବ୍ଦର ଅର୍ଥ- ବିସ୍ତାର । ବେଦରେ ଥିବା ଜ୍ଞାନକୁ ଯେଉଁ ମହାପୁରୁଷ ବିସ୍ତାର କଲେ, ସେ ହେଲେ - ବ୍ୟାସ । ସେ ନାନା ଆଖ୍ୟାନ ଉପାଖ୍ୟାନ ବା କାହାଣୀ ଭିତରେ କାହାଣୀମାନ ଖଞ୍ଜି ଖଞ୍ଜି ପୁରାଣ ଲେଖିଛନ୍ତି । ସେହି କାହାଣୀରେ ବେଦର ମୂଳ କଥା ଫିଟିଛି । କିନ୍ତୁ ଏଗୁଡ଼ିକ ଲେଖା ହୋଇଥିଲା ସଂସ୍କୃତ ଭାଷାରେ । ଆମ ଓଡ଼ିଶାରେ ଭାର୍ଗବୀ ନଦୀ କୂଳରେ ଗାଆଁଟିଏ ଅଛି । ତା'ନାଁ କପିଳେଶ୍ୱରପୁର । ଆଜିକୁ ଚାରି ଶହ ବର୍ଷ ପୂର୍ବେ ସେଠି ଜଣେ ବଡ଼ ପଣ୍ଡିତ ଥିଲେ । ତାଙ୍କ ନାଁ- ଜଗନ୍ନାଥ ଦାସ, ସେ ବ୍ୟାସ ଲେଖିଥିବା ସଂସ୍କୃତ ଭାଗବତ ପଢ଼ିଥିଲେ । ବୁଝିଥିଲେ, ପୁଣି ତାକୁ ବୁଝାଇ ଥିଲେ

ଲୋକମାନଙ୍କୁ, ତାଙ୍କ ବାପା ବି ଏହିପରି କରୁଥିଲେ । କିନ୍ତୁ ଜଗନ୍ନାଥ ଦାସ ଭାବିଲେ- ଏକୁ ଓଡ଼ିଆରେ ଲେଖିଦେବା ଭଲ । ଲୋକେ ସହଜେ ବୁଝିଯିବେ । ବୁଝାଇବା ପାଇଁ ସଂସ୍କୃତ ଜାଣିଥିବା ପଣ୍ଡିତଙ୍କୁ ଖୋଜିବାକୁ ପଡ଼ିବ ନାହିଁ । ତେଣୁ ସେ ସରସ ଓ ସରଳ ଓଡ଼ିଆରେ ଭାଗବତ ପୁରାଣ ଲେଖିଦେଲେ । ଏଇଟି ଓଡ଼ିଆମାନଙ୍କର ଅତି ପ୍ରିୟ ପୁରାଣ ।